# ଦେଖିବ ଯାତରା...

ଦୁଇଟି ପାରା,
ଉଡ଼ି ଉଡ଼ି ଗଲେ
ଆକାଶ ସାରା ।୧।
ଆକାଶେ ମେଘ,
କମି ଯାଇଅଛି
ପବନ ବେଗ ।୨।



ଆଷାଢ଼ ମାସ,
ଚାଉଁ ଚାଉଁ ଖରା
ଉଠୁଚି ଧାସ ।୩।
କହଇ ପାରା,
"ଆଲୋ ପାରୀ ଯିବା
ପୁରୀକୁ ପରା ।୪।

ପୁରୀରେ ଯାଇ,
ଦେଖିବା ଯାତରା
ଅଭଡ଼ା ଖାଇ ।୫।
ଠାକୁର ତିନି,
ଫାଟି ପଡୁଥିବ
ମର୍ଦ୍ଦଳ ଗିନି ।୬।

ଭଉଣୀ ଭାଇ,
ତିନି ରଥେ ଆସି
ବସିବେ ଯାଇ ।୭।

ଭକତ ଗଣ,
ରଥ ଟାଣୁଥିବେ
ପଣକୁ ପଣ ।୮।

ନ ଥିବ ଖାଲି,
ବଡ଼ ଦେଉଳରୁ
ଶରଧାବାଲି ।୯।

ସବୁଠି ବୁରି,
ଭକତ ଆନନ୍ଦ
ଦେଖିବା ଘୂରି ।୧୦।

ଶେଷରେ ଯାଇ,
ଦେଉଳେ ବସିବା
ଦାଣ୍ଡକୁ ଚାହିଁ ।୧୧।

ଅପୂର୍ବ ଶୋଭା,
ଦେଖିବୁ ଲୋ ପାରୀ
କି ମନଲୋଭା ।୧୨।

ସାଗର ବାଆ,
କାନରେ କହିବ
ଭଜନ ଗାଆ ।୧୩।

ଗାଇବୁ ତୁହି,
ଘୁମୁରୁ ଘୁମୁରୁ
ଡାକିବି ମୁହିଁ ।୧୪।



***

# ଆମ ଗାଆଁ ପୋଖରୀ



ଆସ କିଏ ଦେଖିଯିବ
ଆମ ଗାଆଁ ପୋଖରୀ,
ପୋଖରୀ ସେ ନୁହେଁ ଗୋଟେ
ଅଳିଆର ଟୋକରି ।୧।

ଗାଆଁ ମୁଣ୍ଡେ ରହିଛି ସେ
କିଏ ତାକୁ ପଚାରେ,
ତା'ର ଭଲ ମନ୍ଦ କଥା
ନାଇଁ କେହି ବିଚାରେ ।୨।

ସବୁଆଡୁ ପଚା ପାଣି
ପଶେ ତା'ର ଗରଭେ,
ଅଳିଆ ମଳିଆ ସବୁ
ଫୋପାଡ଼ନ୍ତି ସରବେ ।୩।

ଗାଈ ବଳଦ ମଇଁଷି
ଯିଏ ଯାହା ପାରିଲା,
ଗାଧୋଇ ଦେବାକୁ ନେଇ
ତା' ଭିତରେ ଭରିଲା ।୪।

ଗାଆଁରେ ରହିଛି ସିନା
ନଳକୂଅ ନାଆଁକୁ,
ଅଧାଦିନେ ଅକାମୀ ସେ
ଆପେ ଆପେ ଛାଆଁକୁ ।୫।

ଯା' ବାଡ଼ିରେ କୂଅ ନାହିଁ
ସିଏ କିସ କରିବ,
ପୋଖରୀର ପାଣି ଆଣି
ଘରେ ସିଏ ଭରିବ ।୬।

ସେଇଠୁ ମେଲିବ ରୋଗ
କେତେ କ'ଣ ଅଜଣା,
ପୋଖରୀ ସହିବ ନିନ୍ଦା
ଶବଦର ଗଞ୍ଜଣା ।୭।



କେ' ବୋଲିବ ପୋଖରୀଟା
ଦେଖ ବଡ଼ ଅସନା,
ତା' ପାଖକୁ ଯାଅ ନାହିଁ
ତା' ଭିତରେ ପଶନା ।୮।

ଖେଳୁଥିଲେ ତା' ପାଣିରେ
ଦିନେ ଚେଙ୍ଗ ଗଡ଼ିଶା,
ସାରା ଗାଆଁଟାର ସିଏ
ଥିଲା ପ୍ରିୟ ପଡ଼ିଶା ।୯।

ପଦୁଅଁ କଇଁରେ ଭରା
ନିରିମଳ ପାଣିରେ,
ହସୁଥିଲା ଦିନେ ସିଏ
ନୂଆ କେତେ ଠାଣିରେ ।୧୦।

କିସ ହେଲା ଏବେ କହ
କିଏ କଲା ମନ୍ତର,
ପ୍ରିୟପଣ ହଜିଗଲା
ହୋଇଲା ସେ ଅନ୍ତର ।୧୧।



***

# ନଈପାଣି ଘୋଁ ଘୋଁ



ନହକା ପବନ
ବହକା ନଈ,
ଛେଉକା ପାଣିରେ
ଟୁପୁଲି କଇଁ,
ଦଣ୍ଡେଇ ଗାଉଛି ଗୀତ;
କୁଆଁର ପୁନେଇଁ
ଗଲାଣି ଚାଲି
ଉତୁରି ଆସୁଛି ଶୀତ ।୧।



ଚହଲା କିଆରି
ଟହଲା କ୍ଷେତ,
ଦୂର ଦେଉଳରେ
ନାଲିଆ ନେତ,
ସୁଲୁକି ସୁଲୁକି ଉଡ଼େ;
ଛୁଆ ଧାନ ସବୁ
ଫୁସୁରୁଫୁସୁ
ଥିରିଥିରି ବେଳ ବୁଡ଼େ ।୨।

କଅଁଳା ବାଛୁରୀ
ମଉଳା ଖରା,
ଅଗଣା ଗୁହାଳ
ଛାଇରେ ଭରା,
ନସର ପସର ଗାଈ;
କ୍ଷୀର ବଜବଜ
ବାଛୁରୀ ପାଟି
ଅନ୍ଧାର ମାରୁଛି ହାଇ ।୩।

ଲକର ପକର
ଉଷୁନା ଭାତ,
ମାଟି ଭୁରୁଭୁରୁ
କଙ୍କଡ଼ା ଗାତ,
ଦିକିଦିକି ଜଳେ ଚୁଲି;
ଉପର ମୁଣ୍ଡରେ
ଠିଆ ବରଷା
ନଈ ପାଣି ଉଠେ ଫୁଲି ।୪।

ନୂଆଁଣ ଛପର
ଓଲରା ଚାଳ,
ଡେଙ୍ଗଣ ଡହକା
ନଡ଼ିଆ ତାଳ,
ସାଇଁସାଇଁ ଖଡ଼ଖଡ଼;
ନିଇତି ରାତିରେ
କିଏ ସେ ଚାଲେ
ଶୁଭୁଥାଏ ମଡ଼ମଡ଼ ।୫।

କୁକୁର ବୋବାଏ ଭୋ,
ବାହାଘର ବାଣ ଢୋ,
ଅଦିନ ବଦଳ
ଆସିଲେ ଧାଇଁ
ନଈପାଣି ଘୋ' ଘୋ' ।୬।

***



# ବାଇଆର ଗୀତ...

ସଞ୍ଜ ନଇଁଗଲେ
    ବାଇଆ ବସାରେ,
ଜଳି ଉଠେ ସଞ୍ଜବତି,
ଜୁଳୁଜୁଳିଆଟେ
    ଦପଦପ କରି
ବସିଯାଏ ଆସି ନିତି ।୧।



ଖେଳରୁ ଲେଉଟି
    ଗୋଡ଼ ହାତ ଧୋଇ
ନିର୍ମଳ ମନରେ ବସି,
ବାଇଆ ବୋଲଇ
    ପ୍ରାର୍ଥନା ସଙ୍ଗୀତ
ରାତି ଆସୁ ଆସୁ ଖସି ।୨।

ଆକାଶରେ କେତେ
    ତାରା ମାଳ ମାଳ
ଦେଖିଲେ ନ ପାଏ ଆଖି,
କିଏ ସେ ଗଣିଛି
    କେତେ ଗ୍ରହ ତାରା
କିଏ ଅଛି ତା'ର ସାକ୍ଷୀ ।୩।



ବାଇଆ ବିଚାରେ
ଆହା କି ସୁନ୍ଦର
ଆମ ଏଇ ମାଟି ମାଆ,
କେତେ ଗଛଲତା
କେତେ ନଈନାଳ
ରହିଛନ୍ତି ହୋଇ ସାହା ।୪।

ସଭିଙ୍କ ପେଟରେ
ଦାନା ଦେବାପାଇଁ
ପସରା ରହିଛି ଭରି,
କର୍ମ ଅନୁସାରେ
ଫଳର ବେଭାର
ଖଞ୍ଜି ଦେଇଛନ୍ତି ହରି ।୫।

ପଶୁ ପକ୍ଷୀଠାରୁ
କୀଟରୁ ପତଙ୍ଗ
ସଭିଙ୍କ ଉଦର ପାଇଁ,
ରଖିଛନ୍ତି ସିଏ
ଭଳି ଭଳି ଚିଜ
କେଉଁଥିରେ ଊଣା ନାହିଁ ।୬।



ଉଣାଅଛି ଖାଲି
ନିର୍ଲୋଭପଣିଆ
ସଂସାର ଭିତରେ ସାର,
ଜାଣେ ଯେ ଏ କଥା
ବୁଝେ ସବୁ ସିଏ
କରେନା ସେ ତା'ର ମୋର ।୭।

ଗଛେ ଝୁଲୁ ଝୁଲୁ
ଏଇ କଥା ଭାବି
ବାଇଆ ପ୍ରଣତି ଭରେ,
ଶୋଇବା ଆଗରୁ
ଗୀତ ପଦେ ଗାଏ
ଜୟ ଜଗଦୀଶ ହରେ ।୮।



***

# ମେଘରେ ମେଘ...

ବ୍ୟୋମଯାନ ଚଢ଼ି ଆକାଶେ ଉଡ଼ିଲି
ଉଡ଼ିଲି ମେଘର ଦେଶେ,
କଳାଧଳା ମେଘ ଧୂସର ଧୂମାଳ
ଭରିଥିଲା ନାନା ବେଶେ ।୧।



କେଉଁଠି ପାହାଡ଼ କେଉଁଠି ପନ୍ତାର
କେଉଁଠି ସବୁଜ ଭୂଇଁ
ନାନାରୂପେ ମେଘ ଧାଇଁ ଯାଉଅଛି
ଆକାଶର ଛାତି ଛୁଇଁ ।୨।



ମୋ ପରିକା କେତେ ଆଉ ବସିଛନ୍ତି
ବସିଛନ୍ତି ବଡ଼ ସାନ,
ସେମାନେ କି ସତେ ମେଘ ଦେଖୁଛନ୍ତି
ଅବା ଭାବୁଛନ୍ତି ଆନ ।୫।

ମେଘ ସିନା ଦିଶେ ପତଳା ଗହଳ
ନାନା ରୂପ ଧରି ଆସେ,
ଛାତିରେ ତାହାର ଜଳକଣା ଭରି
ଜଗତ ହିତରେ ଭାସେ ।୬।

ହେଇ ଦିଶେ ମେଘ କଳାହାତୀ ପରି
ହେଇ ଦିଶେ ଧଳାଭାଲୁ,
ହେଇ ପୁଣି ଲାଗେ ଦଳଦଳ ମେଘ
ହେଉଛନ୍ତି ସାଲୁବାଲୁ ।୩।

ମେଘ ଉପରେ ମୁଁ ତଳେ ବଣଭୂଇଁ
ସହର ବଜାର କେତେ,
ମେଘର ଚଦର ଘୋଡ଼ାଇ ରଖିଛି
ନ ଦିଶେ ନିରେଖେ ଯେତେ ।୪।

ଢାଳିଦିଏ ପାଣି ସଜାଡ଼େ ଜୀବନ
ସବୁଜ କରଇ ଧରା,
ମେଘ ପୁଣି ଅଟେ ବଡ଼ ବେପରୁଆ
ଖାତର ନ କରେ ଖରା ।୭।

* * *

# ବିଶ୍ୱ ଆମରି ଘର...



ପୃଥିବୀ ଆମର
ବିଚରଣ ଭୂଇଁ,
ବିଶ୍ୱ ଆମରି ଘର;
ମଣିଷ ଆମେରେ
ପ୍ରୀତିର ପାଖୁଡ଼ା,
ଗୋଟିଏ ଡେଣାର ପର ।୧।

মহা আকাশরে
ଝୁଲିଛି ଧରଣୀ,
ବିନ୍ଦୁ ଆକାର ଧରି;
ସିନ୍ଧୁ ଆମେରେ
ନାହିଁ ଥଳକୂଳ
ମଇତ୍ରୀ ଆମର ଡୋରି ।୨।

ପୂରୁବ ପଶ୍ଚିମ
ଉତ୍ତର ଦକ୍ଷିଣ,
ସମାନ ସବୁରି ଦିଗେ;
ନୁହେଁ କେ ଅଧିକ
ନୁହେଁ ସମଧିକ,
ସମଭାବ ସଦା ଜାଗେ ।୩।






***



ତେବେରେ କାହିଁକି
ଏତେ ସବୁ ସୀମା,
ଏତେ ଜାତିଆଣ ବ୍ୟଥା;
ଦେଶ ଦେଶ ବୋଲି
ଯେତେ ମିଛ ଗାର,
ଯେତେ ସବୁ ବାଜେ କଥା ।୪।

ଦେଶ ନାଆଁ ଭୁଲି
ଆସରେ ଗଢ଼ିବା,
ନୂଆ ଏକ ସରକାର;
ଧରଣୀ ହୋଇବ
ଗୋଟିଏ ରାଇଜ,
ଭେଦଭାବ ହେବ ଦୂର ।୫।

ପୃଥିବୀ ଆମରି ମାତା;
ସକଳ ମଣିଷ
ମୁକୁତା ପସରା,
ଏକତା ବନ୍ଧନ ସୂତା ।୬।

ଏକତା ବଳରେ ଭାଇ;
ମୁକୁତା ମାଳାଟି
ଝୁଲାଇ ଦେବାରେ
ବିଶ୍ୱ ଜୀବନ ହୋଇ ।୭।

***

# ଇଟିକିଲି ମିଟିକିଲି...

ଇଟିକିଲି ମିଟିକିଲି
ଫୁଟିଗଲା କାଇଁଚ,
ଦୁନିଆଟା ଆମଘର
ଆମେ ନାଲିପଇଁଚ ।
ଆମେ ସବୁ ଏ ମାଟିର
ଜାତି ଜାତି କଳିକା,
କେତେ ରଙ୍ଗ କେତେ ବାସ
କେତେ ଭଳି ଭଳିକା,
ଆମେ ପୁଣି କୋଳିପରି
ପେନ୍ଥା ପେନ୍ଥା ଭଇଁଚ ।୧।





ଇଟିକିଲି ମିଟିକିଲି ..........
ଏଇ ରବି, ଏଇ ଶଶୀ,
ଏଇ ସାରା ଆକାଶ,
ଯେତେ ଆସୁ ଝଡ଼ ଝଞ୍ଜା,
ଝଡ଼ି ବଢ଼ି ବତାସ,
ଆମେ ଖେଳୁ ମାଛପରି,
ଆମେ ସାନ୍ତୁ କଇଁଛ ।୨।

ଇଟିକିଲି ମିଟିକିଲି............
ନଈ ନାଳ ଗଛଲତା
ବଣଭୂଇଁ ସାଗର,
ଯେତେ ଯାହା ଅଛି ଯହିଁ
ସବୁ କଥା ଆମର,
ଆମେ ସାରା ଜଗତର
ଜାଣିଛ କି ଜାଣିଛ ।୩।

ଇଟିକିଲି ମିଟିକିଲି.............
ଆମ ହାତ ପାପୁଲିରେ
ଆଗାମୀର ସକାଳ,
ଆମେ ଧରୁ ସମୟକୁ
ଏକାଳରୁ ସେକାଳ,
କିଏ କେବେ ଛୁଇଁଛ ।୪।
ଇଟିକିଲି ମିଟିକିଲି............



***

# ଆଗଷ୍ଟ ପନ୍ଦର...

ପିଞ୍ଜରା ଭିତରେ
　　　　ଦେଖିଛ କି ଭାଇ
ଶୁଆଟିକୁ କେବେ ଥରେ,
ଘୋଷା କଥା ସବୁ
　　　　ରଡ଼େ ସେ କେମିତି
ଅକୁହା ବେଦନା ଭରେ ।୧।



ଆଖିରେ ତାହାର
　　　　ଦିଶେ ନାହିଁ କାହିଁ
ସବୁଜ ଜୀବନ ସୁଖ,
ବଦଳରେ ଦିଶେ
　　　　ଅସୁମାରି କେତେ
କାତର କରୁଣ ଦୁଃଖ ।୨।

ଦିନେ ସେ ଆକାଶେ
ଖେଳି ବୁଲୁଥିଲା
ସ୍ୱାଧୀନ ସଙ୍ଗୀତ ଗାଇ,
ଆଜି ବିଚରାଟି
କାରାଗାରେ ଅଛି
ଜାଣି କି ପାରୁନା ଭାଇ ।୩।

ସବୁ ଜୀବ ଲୋଡ଼େ
ସ୍ୱାଧୀନ ଜୀବନ
ପରାଧୀନତାକୁ ଏଡ଼ି,
ଶ୍ରେଷ୍ଠ ଜୀବ ହୋଇ
ମଣିଷ କାହିଁକି
ପକ୍ଷୀ ଗୋଡ଼େ ଦିଏ ବେଡ଼ି ।୪।

ଦିନେ ଆମେ ଥିଲେ
ଫିରିଙ୍ଗି ଅଧୀନେ
ଶୋଷଣ କଷଣ ସହି,
ସରିଛି ସେ କଥା
ମିଳିଛି ମୁକତି
ଭୁଲିଲ କି ଭଲେ ରହି ? ।୫।



ସ୍ୱାଧୀନତା ପର୍ବ
ପାଳୁଅଛେ ଆମେ
ତ୍ରିରଙ୍ଗା ପତାକା ଫେଇ,
ପକ୍ଷୀଟି ବନ୍ଧନେ
ପଡ଼ି ରଡୁଅଛି
ବୁଝିକି ପାରୁନା କେହି ? ।୬।

ଦିଅ ଖୋଲି ଦିଅ
ଶୁଆଟିକୁ ଆଜି
ଥରେ ହେଜ ମନେ ଭାବି,
ଅଗଷ୍ଟ ପନ୍ଦର
ନାହିଁକି ତାହାର
ଦିଅ ତାକୁ ତା'ର ଦାବି ।୭।



***




ଗୋଲାପ ଫୁଟେ          ଗୋଲାପୀ, ଛିଟ
ହଳଦୀ, ନାଲି, ଧଳା,
ନୀଳ ଗୋଲାପ          ସୁନ୍ଦର ଅତି
ନିଆରା ଦିଶେ କଳା ।୧।

ଦେହ ତାହାର          ପାଖୁଡ଼ା ଭରା
ଲୋଡ଼େ ସେ ଖତ ସାର,
କହ ତ କିଏ          ଦେଖିଛ ତା'କୁ
ବଣରେ ଫୁଟିବାର ।୨।

ଗୋଲାପ ଲୋଡ଼େ          ଭିନେ ଚରଚା
କୁଣିଆ ଲୋକ ପରି,
ନ ହେଲେ ସିଏ          ଫୁଟିବ ନାହିଁ
ରୁଷିବ ମାନ କରି ।୩।

କୁଣ୍ଡରେ ଅବା          ଭୂଇଁ ଶେଯରେ
ଯେଉଁଠି ଥିଲେ ସେହି,
ସେବା ଯତନ          କମଣି ଲୋଡ଼ା
ସତ କଥାଟି ଏହି ।୪।



ଅଯନ୍ ହେଲେ ବଣୁଆ ହୁଏ
ସାତ ପତରି ହୋଇ,
ତେଣିକି ସିଏ ଫୁଟେନା ଆଉ
ସେଇଟା ତା'ର ଖୋଇ ।୫।

ଫୁଲ ରାଇଜେ ରାଜଜେମା ସେ
ନିହାତି ସୁକୁମାରୀ,
ଫୁଲ ରସିକ ମଣିଷ ମେଳେ
ଆଦର ତା'ର ଭାରି ।୬।

ଦେଶ ବିଦେଶ ସଭା ସମିତି
ମନ୍ଦିର ଦେବାଳୟ,
ଯେଉଁଠି ଦେଖ ସେଇଠି ସିଏ
ସବୁଠି ତା'ର ଜୟ ।୭।

* * *

# ଶଙ୍ଖଚିଲ...

ଆସିଗଲା ଏବେ
ଭାଦ୍ରବ ମାସ,
ଶଙ୍ଖଚିଲ ଡାକେ
ଦେଖିବ ଆସ ।୧।

ବିଲବାଡ଼ି ଦିଶେ
ଶାଗୁଆ ନେଳି,
ସୋରି ସୋରି ବାଆ
ଯାଉଛି ଖେଳି ।୨।



ଖରା ଚିକିଚିକି
ବିଲରେ ପାଣି,
ଠିଆ ପାଣି ଦେହେ
କେରାଣ୍ଡି ରାଣୀ ।୩।

ଦଣ୍ଡେଇ, କଣ୍ଡିଆ.
ଗଡ଼ିଶା, ରଡା,
ବାଉଁଶପତିରି
ଅମର ମତା ।୪।

ଡିଆଁ ମାରି ବିଲେ
ଖେଳିବେ ଯେବେ,
ମଉଜ ମୋହର
ଆସିବ ତେବେ ।୫।

ସଜ ମାଛେ ମୋର
ପସନ୍ଦ ଭାରି,
ସେଥିପାଇଁ ଉଡ଼େ
ଚକ୍କର ମାରି ।୬।

ଆଉ ସବୁ ଦିନେ
ଚିଲିକା କୂଳେ,
ଘର କରିଥାଏ
ଗଛର ଚୂଳେ ।୭।

ଚିଲିକା' ତା' ନାମ
ମୋ ଯୋଗୁଁ ଭାଇ,
ଚିଲ ଇଲାକା ସେ
ଜାଣ କି ନାଇଁ ।୮।

ଭୋଦୁଅ ଅଗିଣେ
ଘୂରି ମୁଁ ବୁଲେ,
କେତେ ଗାଆଁ ଗଣ୍ଡା
ଗହୀର ତୁଲେ ।୯।

ଶରତ ଋତୁରେ
ମଉଜ ମୋର,
ବିଲେ ଠିଆପାଣି
ଟାଣଇ ଡୋର ।୧୦।

ବିଲେ ପାଣି ଥିଲେ
ଆସେ ମୁଁ ଯେଣୁ,
ମତେ ଶୁଭ ବୋଲି
କହନ୍ତି ତେଣୁ ।୧୧।

"ଶଙ୍ଖଚିଲ ଭାଇ
ନମସ୍କାର,
ମାଛମାନେ ରୁହ
ଖବର-ଦାର୍" ।୧୨।

***



# ଝୁଲି, ଝୁପୁଲି, ଝୁନି...

ବେଳ ବୁଡ଼ିଲେ ସୂରୁଯ ବୁଡ଼େ
କଜଳପାତି ରାବେ,
ବାଉଁଶ କଣି ଉପରେ ବସି
କଅଣ କେତେ ଭାବେ ।୧।

ସରିଲା ଏବେ ଦିନର କାମ
ବସାକୁ ଯିବି ଫେରି,
ଛୁଆ ମୋହର ଦେଖିଲେ ମତେ
ଖୁସିରେ ଯିବେ ଘେରି ।୨।

ମାଆ ହେଇଟି ଆସିଲେ କହି
ଚିଇଁଚିଇଁକା ରାବି,
ଆମ ପାଇଁକି କିସ ଆଣିଛ
ବୋଲି କରିବେ ଦାବି ।୩।

କଅଣ ସବୁ ଦେଖିଲ ଆଜି
ଆମକୁ କହ ଏବେ,
ନ ହେଲେ କେହି ଖାଇବୁ ନାହିଁ
ଶୋଇବୁ ନାହିଁ କେବେ ।୪।

ଏମିତି ଭାବି କଜଳପାତି
ବସାକୁ ଧୀରେ ଯାଇ,
ଦେଖିଲା ପିଲେ ବସି ଅଛନ୍ତି
ତାହାରି ବାଟ ଚାହିଁ ।୫।

ସାନ ଝିଅଟି କହିଲା ମାଆ
ଆସଗୋ ଏଠି ବସ,
ହାଲିଆ ଯୋଗୁଁ ମୁହଁ ତୁମର
ଦିଶୁନି ହସ ହସ ।୬।





ସାରା ଦିନଟା ଉଡ଼ିଉଡ଼ିକା
ଆସିଛ ତୁମେ ଘରେ,
ଦିଆ ଗୋ ମାଆ ଡେଣା ତୁମର
ଆଉଁଶି ଦିଏ ଥରେ ।୭।

ନିଇତି ତୁମେ ଆମ ପାଇଁକି
ଆଣୁଛ କେତେ କ'ଣ,
ଖୋଇ ଦେଉଛ ପାଟିରେ ଆମ
ବସେଇ ଜଣ ଜଣ ।୮।

ଏଣିକି ତୁମେ ଆସିଲେ ଘରେ
ବସିବ ହୋଇ ତୁନି,
ଘର ପାଇଟି କରିବୁ ଆମେ
ଲୁଲି, ଟୁପୁଲି, ସୁନି ।୯।

ଲୁହ ଆଖିରେ କହିଲା ମାଆ
ପିଲାଙ୍କ ମଥା ଛୁଇଁ,
ଆହା ମୋ ପିଲେ କେଡ଼େ ଗୁଣର
ମରି ଯାଉଥେ ମୁହିଁ ।୧୦।

***

# ମେଘରେ ମେଘ...

ଗ୍ରୀଷମ ଶେଷେ
ବଉଦ ଭାସେ
ଆକାଶ ଯାଏ ଭରି,
କଳା ଘୁମର
ହୋଇ ସେ ଆସେ
ଦିଏ ଅନ୍ଧାର କରି ।୧।



ଦେହ ତାହାର
ପାଣିରେ ଭରା
କେତେ ଯେ ତା'ର ରୂପ,
ପବନେ ଖେଳି
ଘୋଟିଲେ ସିଏ
ମଉଳେ ଖରା ଧୂପ ।୨।

ଖେଳ ପଡ଼ିଆ
ପାଇଲେ ଆମେ
ଗୋଡ଼ିଆ ଗୋଡ଼ି ଧାଉଁ,
ହାର ଜିତକୁ
ପଚାରେ କିଏ
ବଢ଼ିଆ ମଜା ପାଉଁ ।୩।

ମେଘ ସେମିତି
ନାନା ରୂପରେ
ଧାଆଁ ଦଉଡ଼ କରି,
ଆକାଶ ସାରା
ଖେଳେଇ ଯାଏ
ହେବ କେ ତା'ର ସରି ।୪।

ମେଘକୁ ମେଘ
ହୋଇଲେ ମାଡ଼
ବିଜୁଳି ହୁଏ ଜାତ,
ବଜରପାତ
ଘଡ଼ଘଡ଼ିରେ
ଥରେ ଛପରି ଛାତ ।୫।

ଅନ୍ଧାର ରାତି
ହାଲୋଳ ହୋଇ
ଆଲୁଅ ଯାଏ ଖେଳି,
ଝଲକ ପରି
ଚମକି ଦିଶେ
ମେଘ ଯାତରା ମେଳି ।୬।

ମେଘରେ ମେଘ
ଆସ ତୁ ଆଗ
ଖରାକୁ ଦେଇ ଠେଲି,
ରାତି ଅନ୍ଧାରେ
ବିଜୁଳି ଶୋଭା
ଦିଏ ତୁ ବେଗେ ମେଲି ।୭।

ତୋତେ ମୁଁ ଦେଖି
ମନରେ ଭାଳେ
ଯିବି ଆକାଶେ ଉଡ଼ି,
ସାଥିରେ ନେଇ
ଗାଆଁଟା ସାରା
ମାଆ, ମାଉସୀ, ଖୁଡ଼ୀ ।୮।

***

# ଖରାଦିନ..



ଦୁନିଆ ଜଳେ
ଗ୍ରୀଷମ କାଳେ
ଜଳେ ଆକାଶ ମାଟି,
ବିଲ ପଡ଼ାର
ଶୁଖିଲା ଭୂଇଁ
ମେଲା ଦିଶଇ ଫାଟି ।୧।

ଝାଞ୍ଜି ପବନ
        ରାତି କି ଦିନ
ଅନବରତ ବହେ,
ଜୀବନ ଲାଗେ
        ବଡ଼ ବିଷମ
କିଏ ସେ କହ ସହେ ।୨।

ସଞ୍ଜ ସଞ୍ଜୁଆ
        ବୁଡ଼ିଲେ ବେଳ
ପବନ ହୁଏ ଠିଆ,
ଗରମ ବାମ୍ଫ
        ଅଟକି ରହେ
ସନ୍ତୁଳି ହୁଏ ହିଆ ।୩।

ଦୂରରେ କାହିଁ
        ଦଉଡ଼ି ଯାଏ
ଦମକଳର ଗାଡ଼ି,
ପୁଣି କେଉଁଠି
        ଲାଗିଲା ନିଆଁ
ପୋଡ଼ିଲା ଘରବାଡ଼ି ।୪।

ତୋଟା ମାଳରେ
ଆମ୍ବ ଡାଆଣୀ
ଅମରମତା ହୋଇ,
ନାକ କାନରେ
ଯାଆନ୍ତି ପଶି
ଦେଖାନ୍ତି କେତେ ଖୋଇ ।୫।

ଦୂର ପାହାଡ଼େ
ଦିଶଇ ନିଆଁ,
କିଏ ଜାଳିଲା ଆହା,
ମିଛରେ ଲୋକେ
କହି ହୁଅନ୍ତି
ମାଙ୍କଡ଼ ହେଲା ବାହା ।୬।





ଆମ୍ବ, ପଣସ
ଖଜୁରି କେନ୍ଦୁ
ଏଇ ବେଳରେ ପାଚେ,
ଝାଳ, ଘିମିରି
ପାଶୋର ଯାଏ
ଖୁସିରେ ମନ ନାଚେ ।୭।



ଦହି ପଖାଳ
କୋଶଳା ଶାଗ
ସାଙ୍ଗକୁ ବଡ଼ି ଚୂରା,
ଗ୍ରୀଷମେ ଲାଗେ
ଭାରି ସୁଆଦ
ତୋରାଣି ପେଟ ପୂରା ।୮।

ଆଗକୁ ଥାଏ
ରଜ ପରବ
ଦିଶଇ ରଜ ଦୋଳି,
ପାଟିରେ ବାଜେ
ଖଟା ମଧୁର
ଜାତିଜାତିକା କୋଳି ।୯।

ଗରମ ସିନା
ଦେହକୁ ବାନ୍ଧେ
ଖରାଦିନିଆ ସୁଖ,
ନିଆରା ଲାଗେ
ସବୁଠୁ ମତେ
ପାସୋର ଯାଏ ଦୁଃଖ ।୧୦।

***

# ମାଟିଆ ଚିଲ...

ଉଡ଼ି ଉଡ଼ି ଯାଏ ମାଟିଆ ଚିଲ,
ଡେଇଁ ବନ୍ଧ ବାଡ଼ ଗହୀର ବିଲ ।୧।

ଆଖି ତା'ର ଅବା ଦୂରବୀକ୍ଷଣ,
ଡେଣା ମେଲିଥାଏ କାହିଁରେ କ'ଣ ।୨।

ଦୁଇ ଗୋଡ଼େ ନଖ ସତେ ବା କ୍ଷୁର,
ହେଇ ଉଡ଼ିଯାଏ ଅନେକ ଦୂର ।୩।

ଶଙ୍ଖଚିଲ ତୁଲେ ସୁନ୍ଦର ନୁହେଁ,
ହେଲେ ଏକଜାତି ଭାଇ ସେ ଦୁହେଁ ।୪।

ଗାଆଁ ଗହଳରେ ଜାଣନ୍ତି ଲୋକେ,
ଦୂର୍ ଦୂର୍ କରି ଗୋଡ଼ାନ୍ତି ଥୋକେ ।୫।

"ଶଙ୍ଖ ଚିଲ ଭାଇ ନମସ୍କାର,
ମାଟିଆ ଚିଲକୁ ଗୋଇଠା ମାର" ।୬।

ଶଙ୍ଖ ଚିଲ ପଚା ଖାଏନା କାହିଁ,
ମାଟିଆର କିନ୍ତୁ ବିଚାର ନାହିଁ ।୭।

ପଚା ଶଢ଼ା ମଲା ପାଇଲା ଯାହା,
ସଫାକରି ଖାଏ ଯା' ମନ ତାହା ।୮।



ନିତି ଛେଇ ଛେଇ ସବୁଠୁ ତଡ଼ା,
ତଥାପି ମାଟିଆ ଉଠାଏ ମଡ଼ା ।୯।

ମେହେନ୍ତର ସାଜି କରଇ ସେବା,
ବୁଝେ ନାହିଁ ସିଏ ଦେବା କି ନେବା ।୧୦।

ସେବା ଗୁଣ ଦେହେ ରହିଛି ଭରି,
ବୁଲୁଥାଏ ତେଣୁ ସେବକ ପରି ।୧୧।

ନିନ୍ଦା ପରଶଂସା ଅପେକ୍ଷା ନାହିଁ,
ହିତ କରୁଥାଏ ମାଟିଆ ଭାଇ ।୧୨।

***

# ଦିଅ ମତେ ଆଜେ ଛବିବହି...

ଛବି ମତେ ଦିଅ
ଛବିଟିଏ,
ଚିତ୍ରକାର ପରା
କବିଟିଏ ।୧।



ଗୀତ ତା'ର ଫୁଟେ
ଗାରେ ଗାରେ,
ନାଲି ନେଳି ରଙ୍ଗ
ଧାରେ ଧାରେ ।୨।

ଗପ ଭରିଥାଏ
ଭଳି ଭଳି,
କେତେ ଭାବଭାଷା
ଛଳି ଛଳି ।୩।
ହସକାନ୍ଦ କେତେ
ମିଠାକଥା,
କହିବାକୁ ଛବି
ସମରଥା ।୪।
ଛବି ଲାଗେ ଅଙ୍କା
ଗୀତଟିଏ,
ରଙ୍ଗିଲା ଅକ୍ଷର
ମିତଟିଏ ।୫।
ଛବିରେ ଛବିରେ
ଫୁଟେ ଭାଷା,
ଛବି ବିନା ମନୁ
ତୁଟେ ଆଶା ।୬।
ଦିଅ ମତେ ଆକେ
ଛବିବହି,
ବସି ମୁଁ ପଢ଼ିବି
ରହି ରହି ।୭।



***

# କାଁ କାଁ କୁଁ କୁଁ



କାଉ ପଚାରିଲା କୋଇଲିକୁ ଦିନେ
ମନ କରି ଟିକେ ଊଣା,
ସବୁଆଡ଼େ ତୋର ଆଦର କାହିଁକି
ମତେ ମିଳେ ଉଲୁଗୁଣା ।୧।

ନିଇତି ସକାଳୁ ଡାକ ଦିଏ ମୁହିଁ
ଉଠରେ ସଭିଏଁ ଉଠ,
ଶେଯ ଛାଡ଼ି ଏବେ କାମକୁ ବାହାର
କର ନାହିଁ ଆଉ ମଠ ।୨।

ଘର ଘର ବୁଲି ଅଇଁଠା ଅସନା
ଉଠାଇ କରେ ମୁଁ ହିତ,
କେହି ସେ କଥାକୁ ବିଚାର କରେନା
ମଣେ ନାହିଁ ମତେ ମିତ ।୩।



କିଛି ତୁ କରୁନା     ବସା ବି ବାନ୍ଧୁନା
ଲୁଚି ଛପି ରହିଥାଉ,
କେଉଁ ଛଟକରେ     ଚୋରପରି ଆସି
ମୋ ବସାରେ ଅଣ୍ଡା ଦେଉ ।୪।

ତୋ' ପିଲାକୁ ପାଳି     ବଡ଼ ମୁଁ କରଇ
ହେଲେ ଥରେ ସେଥିପାଇଁ,
କେବେ ଦିନେ କେହି     ପରଶଂସା କରି
ପଦଟିଏ କହି ନାଇଁ ।୫।

ବରଷକେ ଥରେ     ବସନ୍ତ ଋତୁରେ
ଦେଖା ଦେଉ ତୁହି ଆସି,
କୁଣିଆ ପରିକା     ଅବେଳେ ପହଞ୍ଚି
ମଧୁର ବଚନ ଭାଷି ।୬।

କେଉଁ ଗୁଣ ପାଇଁ     ଏତେ ସନମାନ
ମଣିଷ ଦିଅଇ ତତେ,
ମୋ ଡାକ ଶୁଣିଲେ     ମୁହଁକୁ ଛିଞ୍ଚାଡ଼ି
ହୁରୁଡ଼ାଇ ଦିଏ ମତେ ।୭।



କୋଇଲି କହିଲା          କାଉ ଭାଇ ଶୁଣ
ମନରେ ନ କରି ଖେଦ,
ତୁମେ ଭଲ ଅବା          ମୁଁ ଅଟେ ଖରାପ,
ରଖନା ସେ ଭେଦାଭେଦ ।୮।

ପ୍ରକୃତି ନିୟମ          ବଳେ ଆମେ ସବୁ
ପାଇଅଛେ ନିଜ ଗୁଣ,
ତୁମ କାଆ କାଆ          ମୋର କୁହୁ କୁହୁ
ସବୁ ତା'ର ଅବଦାନ ।୯।

ସଂସାର ଭିତରେ          ସଙ୍ଗୀତ ଅଟଇ
କଳା ଜଗତରେ ସାର,
ଜନ୍ମଗତ ଗୁଣେ          ମୋ କଣ୍ଠେ ସଙ୍ଗୀତ
ଦେଇଛନ୍ତି ନିରାକାର ।୧୦।

ଭଲ ବୋଲି ମୁହିଁ          ଆଦର ପାଏନା
ପାଏ ମୋର କୁହୁ ଡାକ,
କାଲି ଯଦି ମୋର          ସ୍ୱର ହଜିଯିବ
ତୁଟିବ ସେନେହ ଯାକ ।୧୧।

ମିଳିମିଶି ଆମେ କାମ କରିଯିବା
ନିଜ ଗୁଣ ଅନୁସାରେ,
ତୁମ ଗୁଣେ ତୁମେ ଅଟ ମହୀୟାନ
ଶୋଚନା ନ କର ବାରେ ।୧୨।

କାଉ ହସିଦେଲା କୋଇଲି ହସିଲା
ଦୁହେଁ ବନିଗଲେ ମିତ,
ସେଇଠୁ ଶୁଭିଲା ଚଉଦିଗେ ମେଲି
କାଆ କୁହୁ ମିଶା ଗୀତ ।୧୩।

ସଙ୍ଗୀତର ଏକ ନୂଆ ଧାରା ଅବା
ଖେଳିଗଲା ତାଳେ ତାଳେ,
ପତରେ ପତରେ ବଉଳେ ବଉଳେ
ମେଲିଗଲା ଡାଳେ ଡାଳେ ।୧୪।



***